

# ଶ୍ରୀ ରାମଙ୍କ ଶୋକ ଚଉତିଶା ।

ଯଥା ରାଗ ।



କରନ୍ତି କାରୁଣ୍ୟ ରାମ ସୀତା ଗୁଣ ଗୁଣି,
କାହିଁ ଛାଡ଼ି ଗଲୁ ସୀତା ପ୍ରାଣର ମେଳଣୀ ।
ଖଣହେଁ ନ ଛାଡ଼ୁ ସୀତା ଏ ମୋହର ପାଶ,
ଖଣ୍ଡିଲା କେବଣ ବିଧି ଏତେକ ମୁହାଁଶ ।
ଗୁଣର ଗଉର ସଖି କେଣେ ଛାଡ଼ିଗଲୁ,
ଗହନବନରେ ସଖି ଏତେ କଷ୍ଟ ଦେଲୁ ।
ଘରୁ ଯେ ବାହାର କଲେ କୈକେୟୀଙ୍କ ଆଇ,
ଘେନ ତୋତେ ବନବାସ କଲି ବଇଦେହୀ ।
ନରେଖ ହୋଇଣ ସଖି ଛାଡ଼ି ଗଲୁ ମୋତେ,
ନଆଶ୍ରା ହୋଇଣ ସଖି ଖୋଜୁଅଛି ତୋତେ ।
ଚତୁର ପଣକୁ ତୁ ଯେ ଅଟୁ ବଇଦେହୀ,
ଚଉ ମୋର ତୋଷିଥାଉ ଚାଟୁକଥା କହି ।
ଛାଡ଼ି ତୁ ଅନ୍ତର ହେଲୁ ଏ ମୋହର ପାଶ,
ଛିଣ୍ଡାଇ ତେଜି ଘେନଗଲୁ ଏତେକ ମୁହାଁଶ ।

ଯୁବାକାଳେ ଏତେକଷ୍ଟ ଦେଲୁ ବଇଦେହି;
ଜାଣିଲି ହୃଦରେ ତୋର ଦୟା ମୋତେ ନାହିଁ
ଝାଡ଼ର ମାଳତୀ ପ୍ରାୟେ ହୋଇଲି ଅନାଥ;
ଝୁରି ଝୁରି ନୟନକୁ ନ ଦିଶଇ ପଥ ।
ନିର୍ମଳ ଚନ୍ଦ୍ରବଦନ ଲୁଚୁଇଲୁ କାହିଁ,
ନୟନ ଯେ କରଅଛୁ କୁଳଦୀପ ଛୁଇଁ ।
ଟଳଲଡ଼ ଯେଉଁ କଥା ବନବାସେ ଅସି,
ଟୋପରେ ପକାଇ ମୋତେ ଗଲୁ ଶୁଭ୍ରକେଶୀ ;
ଠାବରୁ ଚଳନ୍ତ ନ ପାରେ ତୋ ଗୁଣ ସୁମରି,
ଠିଆ ହୋଇବାକୁ ଯଷ ନାହିଁଟି ମୋଦର ।
ଡାଲମ୍ବ ବୀଜ ପ୍ରାୟେ ଦଶେ ଦନ୍ତପନ୍ତି,
ଡାକିଲେ ଭାଷୁ ବଚନ କୋକିଳର ମତ
ଢୋଳିବ ଗରଳ ରୂପ ତୋହର ବଦନେ,
ଢାଳେହେଁ ଅବସ୍ଥା କରି ଗଲୁ ଘୋରବନେ ;
ଏଣେ ଆଉ ଜୀବନକୁ ଆଶା ମୋର ନାହିଁ,
ହରିଣୀନୟନୀ ସୀତା ହରାଇଲି କାହିଁ ।
ତୋର ପାଇଁ ସଭାମଧ୍ୟେ ଧନୁ ଭଗ୍ନ କଲି,
ତରୁଣ କାଳକୁ ସଖି ତୋତେ ହରାଇଲି ।
ଥିଲାବେଳେ କେତେ କଥା କହୁଥାଉ ସଖି,
ଥାବର ବରଣ ଏବେ ଗଲୁ ଚନ୍ଦ୍ରମୁଖି ।
ଦଇବ ଭିଆଇଅଛି ଏସନକ କୃତ୍ୟ,
ଦୁଃଖକାଳେ ସାହା ହୁଅ ପ୍ରାଣର ସଙ୍ଗାତ ।
ଧରିଲୁ କେସନେ ହୃଦୟା ମୋତେ ଛାଡ଼ିଦେଇ;
ଧରଣୀ ମଧ୍ୟରେ ଆଉ ଦେଖିବାକୁ ନାହିଁ ।

# ଶ୍ରୀରାମଙ୍କ ଶୋକ ତରଙ୍ଗିଣୀ ।

ନିଶାପତି ଯେହ୍ନା ମୁଖକୁ ନୁହନ୍ତି ସମାନ;
ନପଟେନ୍ଦ୍ର କୋଟିଲକ୍ଷ୍ମୀ ଯେଉଁ ରୂପକୁ ସମ ।
ପୂର୍ବଜନ୍ମେ ଅବା ସଖି କି ପାତକ କଲି;
ପରମ ସାଧ୍ୱୀ ସୀତା ତୋତେ ହରାଇଲି ।
ପଲଙ୍କ ସେଜ କଥା ବନବାସେ ଆସି,
ପାଦରେ ଧରାଇ ମୋତେ ଗଲୁ ଶୁଭ୍ରକେଶୀ ।
ବେଙ୍ଗୁଲି ଶଯ୍ୟାରେ ତୁ ଗୋ ଶୁଅଁ ଥାଉ ରାତି,
ବେଳେବେଳେ ବିଳମ୍ବ ହେଲେ ମୋତେ ତୁ ଉଠାଉ ।
ଭବରେ ଜନକ ଋଷି ସମର୍ପିଲେ ମୋତେ;
ହେଳାରେ ବସାଇ ସଖି କେହୁ ନେଲା ତୋତେ ।
ମଣିବ ନିଷ୍ଠୁରେ ସଖି ତୋହର ବନ୍ଧୁନେ,
ମରାଳଗମନୀ ଛାଡ଼ିଗଲୁ ଘୋରବନେ ।
ଜାଣି ନ ପାରିଲି ସଖି ମାୟାମୃଗ କଳା;
ଜୀବର ଧନକୁ ମୋର କେହୁ ଘେନିଗଲା ।
ରମଣୀରତନ ତୁହି ନାରୀଙ୍କର ବାମା;
ରୂପ ଦେଖି ମୋହ ହେଲେ ସୁର ନର ବ୍ରହ୍ମା ।
ଲକ୍ଷ୍ମୀଙ୍କ ସଦୃଶ ତୁହି ଅଟୁ ରୂପକାନ୍ତି;
ଜୀବନ ଚିତ୍ତେ କେଉଁ ଚୋରେ ହରିନେଲା ସତି ।
ବନ ଗିରିକନ୍ଦରେ ଯେ ଲୋଡ଼େ ତତ୍କାଳ;
ଆତୁରେ ବନସ୍ତେ ମୋର ନ ଦେଖି ଯୁବତୀ ।
ଏତେ କି ସ୍ୱପନ ସଖି ହୋଇବ ନିଷ୍ଠୁରେ;
ସ୍ୱମନ୍ତ୍ର ତୁ ସୂର୍ଯ୍ୟବଂଶ କଲୁ ଗୋ ନିର୍ବଂଶେ ।
ସାନଭାଇ ଲକ୍ଷ୍ମଣ ମୋର ଜଗିଥିଲା ତୋତେ;
ସୁନ୍ଦର ବଦନୀ ସୀତା କେହୁ ନେଲା ତୋତେ ।

ଯତେ କି ସ୍ୱପନ ସଖି ଦେଖିବ ଜୀବନ,
ସ୍ୱପ୍ନ ତୋ ବିମ୍ବାଧରେ ଦେବଇଁ ଚୁମ୍ବନ ।
ହସାଇବା ପାଇଁ ତୋତେ ବନକୁ ଆଣିଲି;
ହରିଣୀନୟନି ସୀତା ତୋତେ ହରାଇଲି ।
ଛଳ କରି ସଖି ଏବେ ତୋତେ କେହୁ ନେଲା;
ଛଳନାରେ ଏବେ ମୋତେ ଅପଯଶ ଦେଲା ।



## ବନବିହାର ।



ରାଗ ଖଣ୍ଡିତା ।

ବନେ ବନେ ଅକୁଳେ ଖୋଜନ୍ତି ରଘୁନାଥ;
କେଣେ ଛାଡ଼ିଗଲୁ ମୋର ପ୍ରାଣର ସଙ୍ଗାତ ।
ଅଗୋ ସୀତେ ଗୋ;
ସଙ୍ଗତରେ ନେଇଯାଅ ମୋତେ ଗୋ । ୧ ।
ତୋ'ହରି ବଚନେ ସୀତା ମୃଗମାରି ଗଲି;
ଲେଉଟି ଆସନ୍ତେ ତୋର ମୁଖ ନ ଦେଖିଲି ।
ଗୃହୁଁ କନାରେ;
କେଉଁଠାରେ ଲୁଚିଲୁ ନବୀନା ରେ । ୨ ।
ଲତା ବୃକ୍ଷମାନଙ୍କୁ ପୁଚ୍ଛନ୍ତି ରଘୁନାଥ,
ତୁମ୍ଭେମାନେ ଦେଖିଛ କି ଜନକ ଦୋହିତା,
ବୃକ୍ଷମାନେ ହେ;
ତୁନିହୋଇ ରହିଛ ମଉନେ । ୩ ।
କହିଁଲ ନ କହ ମୋତେ ସୀତାର ବାରତା,
ବିହି ମୋତେ ବାମ ହେଲା ହରାଇଲି ସୀତା.
ଏକା ହୋଇ ଗୋ;

କେମନ୍ତେ ବଞ୍ଚିବ ବଇଦେହୀ ଗୋ । ୪ ।

କେତକୀ ମରୁଆ ଜାଇ ଯୂଇ କନଅର,
ଅଛ ଯତ୍ନେ ମଣ୍ଡି ହୋଇ ଥାଇ ପ୍ରିୟା ମୋର,
ଶୋଭିବନ ରେ ;
ଦେଖୁଥାଉ ଚନ୍ଦ୍ରମାବଦନ ରେ । ୫ ।

ସେ ଶୋଭା ବଦନ ଆଉ ବାରେ ନ ଦେଖିବି ,
ନରେଶ ଜନଙ୍କ ପ୍ରାୟ ଅନାଥ ହୋଇବି;
ପ୍ରାଣବନ୍ଧୁ ଗୋ ,
ମୁଖ ବିକାଶଇ ପୂର୍ଣ୍ଣଇନ୍ଦୁ ଗୋ । ୬ ।

ଘଟପାନେ ଓଷ୍ଠ ଶୋଭା ଦଶଇ ତୋହର,
କୋକିଳ ଜିଣି ତୋ କଣ୍ଠ ଶୁଭଇ ସୁସ୍ୱର,
ଗଳା ହାର ଗୋ ,
ମୁକୁତା ମଣ୍ଡିତ ହୃଦୟର ଗୋ । ୭ ।

ମନ୍ଦ ମନ୍ଦେ ହସି କେ ଚାହିଁବ ନେତ୍ରକୋଣେ
ସଙ୍ଗେ ଘେନ କାହାକୁ ବୁଲିବ ବନେ ବନେ,
ବିମ୍ବାଧରୀ ଗୋ ,
ତୋ ଗୁଣ ଗୁଣିଣ ଯିବ ସର ଗୋ । ୮ ।

ପାଦ ପୀଡ଼ା କଲା ବୋଲି କେତେ ବସୁ ରୁଷି,
କଥା ପଦେ ନ କହିଲେ ଅଳପ ଦେଉ ହସି,
ଜୀବଧନ ରେ ,
କି କହିବ ମଧୁର ବଚନରେ । ୯ ।

ଶାଢ଼ୀ ପଣନ୍ତରେ ମୋତେ ବାନ୍ଧୁ ରଥ ଅନ୍ତେ,
ପଦ୍ମ ଶଯ୍ୟା ପଲଙ୍କ କେ ପାରିଦେବ ମୋତେ,
ହେମଗୋରୀ ଗୋ,

ହେମଜାଳେ ବଞ୍ଚିବ କପଟ ଗୋ ।୧୦।
ଅଣ୍ଡିର କୋକିଳ ପ୍ରାୟେଁ ଶୁଣେ ତୋର ବଣୀ,
ଅମ୍ବରେ ତୁ ଖଟିଥାଉ ମୋର ମନ ଜାଣି,
ଶୁଭ୍ରକେଶୀ ଗୋ ,
ଅଳପ ଗେଲ୍ଲାଇ ଦେଉ ହସି ଗୋ ।୧୧।
ଗଲେ ଅଣହେଲା ପକ୍ଷି କର ନାହୁଁ ମୋତେ,
ଏତେଡ଼ ସ୍ନେହ କର ପକ୍ଷି ମୂରୁଛୁ କେମନ୍ତେ,
ହେମଗୋରୀ ଗୋ,
କହୁଥାଉ ତୁ ଶୀତଳ ବାଣୀ ଗୋ ।୧୨।
ଅଗହୁଁ ନିରଶ ମୋତେ ନ ଥିଲୁ ତୋ ଚିତ୍ତେ;
ନଉକାରେ ଥାଇ ଭେଲା ବୁଡ଼ାଇଲୁ ମୋତେ;
କୁଳସ୍ତ୍ରୀସି ଗୋ ,
ଭୁଲେ କି ଲଗାଇ ଏତେ ଯର ଗୋ ।୧୩।
ବୋଲେ ଦୀର୍ଘ ଦୀନ ଲୀଳା ଏବେ ଶେଷ
'ସୀତାଙ୍କୁ ନ ଦେଖି ରାମ ମନରେ ବିଳାପ,
ଗୃହମୂହୁଁ ଗୋ ;
ମୂରୁଛି ରହିଲୁ କାହୁଁ ଯାଇଁ ଗୋ ।୧୪।



## ପଞ୍ଚବଟୀବନେ ରାମଙ୍କ ବିଚ୍ଛେଦ ।



ପଞ୍ଚବଟୀବନେ ରାମ ଘରଣୀ ହରାଇ
କାନ୍ଦିଲା ଶୋକନ୍ତୁ ଅତି ଆରତ ସେ ହୋଇ,
ରଘୁପତି ଯେ ,
ବନ ଗିରିଙ୍କୁ ଗୃହୀଁ ପୁଛନ୍ତି ଯେ ।୧।

କେ ଦେଖିଛ କହ ମୋତେ କେ ନେଲା ମୋ ନାରୀ
ନ ଜାଣଇ କେଉଣେ ଗଲା ଜନକ କୁମାରୀ;
ତା ଖବର ଦେ
କହ ମୋତେ ସୁଦୟା ମନର ଦେ । ୨ ।

ତା ବିଚ୍ଛେଦେ ତନୁ ମୋର ହୋଇଲାଣି କ୍ଷୀଣ
କାହା ସଙ୍ଗେ ବିହରିବି ଏ ଘୋର କାନନ,
ନାରୀବର ଯେ ,
ଅଟେ ସେ ମୋ ଗଳାରତ୍ନ ହାର ଯେ । ୩ ।

କାହାକୁ ମୁଁ ପଚାରିବି ଏ ବନରେ ଯାଇଁ,
ଜନ୍ତୁ ମନୁଷ୍ୟ ଗୋଟିଏ ଦେଖିଲଇ ନାହିଁ,
ଆହା ସୀତା ଗୋ ।
କେ କହିବ ତୋହର ବାରତା ଗୋ ।

ଦଶଦିଗ ଅନ୍ଧକାର ଦିଶୁଅଛି ମୋତେ ।
ତୋ ବିନା ମୃଗନୟନା ବଞ୍ଚିବି କେମନ୍ତେ,
ପ୍ରାଣସଖି ଗୋ,
ଅମ୍ବର ନୟନ-ଗଳୁ କାହିଁ ଗୋ । ୪ ।

ଚିନ୍ତାଥିଲେ ମଲି ମୁଁ ଯେ ତୋର ସଙ୍ଗ ଲାଗି
ଶୃଙ୍ଖଳ ବିଧାତା କେଉଁ ସୁଖ ଦେଲା ଭାଙ୍ଗି,
ବିଲକ୍ଷଣ ଯେ ,
କେ କରି ପାରିବ ତାହା ଅନ ଯେ । ୫ ।

ଜଗତ ମାଝରେ ମୋହ ସମ ନାହିଁ ଦୁଃଖୀ,
ଜାଣୁ ଜାଣୁ ହରାଇ ବସିଲି ଚନ୍ଦ୍ରମୁଖୀ,
ଜାଣିଲଇଁ ଯେ ,
ଜଗତରେ ନାରିମାଗୀ ମୁହିଁ ଯେ । ୬ ।

ଝାଡ଼ର ମାଳତୀ ପ୍ରାୟେ କରି ଗଲୁ ମୋତେ,
ଝଲ ଝଟା ଚନ୍ଦ୍ରବଦନ ନ ଦେଖିଲି ନେତ୍ରେ,
ବାଳାମଣି ଗୋ
ବାଘୁଣୀ ହେଲୁ ଦେଖିଣ ହରିଣୀ ଗୋ ।୮।
ବନକୁ ଆସିବା ବେଳେ କହୁଥିଲ ମୋତେ;
ଅପୂର୍ବ ପଦାର୍ଥ ଦେଖି ନ ମାଗିବୁ ମୋତେ,
ପାଶୋରିଲୁ ଗୋ,
କନକ ମୃଗରେ ଶ୍ରଦ୍ଧା କଲୁ ଗୋ । ୯ ।
ମୋର ବୋଲେ ମୃଗ ମାରିବାକୁ ଗଲି ମୁହିଁ,
ଅପୂର୍ବ କୁରଙ୍ଗୀ ମାରି ଆଣି ମୁଁ ଅଛଇ,
ନାଥ ତୁମ୍ଭ ଗୋ ,
ମୃଗ ଦେଖି ହେଉଥିଲୁ କହୁ ଗୋ ।
କି କରିବି କେଉଁଣେ ଯିବି ନ ଦିଶଇ ବୁଦ୍ଧି,
ଛାଡ଼ିଣ ଯାହା ଗଲୁ ଯୁବତୀ ରତ୍ନନିଧି
ଗଲୁ କାହିଁ ଗୋ,
କହୁଛନ୍ତି ରାମ ଶୋକହୋଇ ଗୋ । ୧୧ ।



—( ସମ୍ପୂର୍ଣ୍ଣ )

କଟକ ବ୍ରଜେନ୍ଦ୍ର ପ୍ରେସରେ ଶ୍ରୀ[illegible] ଣି ଦାସଙ୍କଦ୍ୱାରା ମୁଦ୍ରିତ ।

# ହନୁମାନ ପୁସ୍ତକାଳୟ ।



ନିମ୍ନଲିଖିତ ପୁସ୍ତକମାନ ଆମ୍ଭ ନିକଟରେ ବିକ୍ରୟ ହେଉଅଛି ଗ୍ରାହକଗଣ ଚିଠି ଦେଲେ ଅନାୟାସରେ ପ୍ରାପ୍ତ ହେବେ । କୌଣସି ଗ୍ରାହକ ଟ ୫ ଙ୍କାରୁ ଅଧିକ କ୍ରୟକଲେ ତାହାଙ୍କୁ ଉଚିତ କମିଶନ ମଧ୍ୟ ଦିଆଯାଏ ।

| | | | |
|---|---|---|---|
| ଅଙ୍ଗଦ ପଞ୍ଜି | ଟ ୦ ৵ | ଗୋପିଭାଷା | ଟ ୦ ଏ |
| ଲକ୍ଷ୍ମୀ ପୁରାଣ | ଟ ୦ ৵ | ହନୁମାନପ୍ରଶ୍ନ | ଟ ৵ |
| ଦୁର୍ଗାସ୍ତୁତି | ଟ ୦ / | ଭୂତକେଳି | ଟ ୦ ৵ |
| ଦଶରଥବିଳାପ | ଟ ୦ / | ଭ୍ରମରବର ଯାତ୍ରା | ଟ ୦ ৵ |
| ବିନାଧ ମେଳା | ଟ / | ପ୍ରଭାତ ଅବକାଶ | ଟ ୦ / |
| ବୋଇଲି ମାଳିକା | ଟ ୦ / | ସାମ୍ବଦ୍ୟଙ୍କ | ଟ ୦ ৵ |
| ମଙ୍ଗଗୀତ | ଟ ୦ / | ମୃଗୁଣିସ୍ତୁତି | ଟ ୦ / |
| କେଦାର ବ୍ରତ | ଟ / | କେଶବ କୋଇଲି | ଟ ୦ [illegible] |
| ଚେଲ୍ଲଗୁଣ୍ଡିଆ | ଟ ୦ / | କାନ୍ତ କୋଇଲି | ଟ ୦ [illegible] |
| ମନ ବୋଧ | ଟ ୦ ୬ | ଇଫଲ ଟିକା | ଟ ୦ ୬ |
| ଦୁଃଖଯଣାଣ ଚଉତିଶା | ଟ ୦ / | ଲକ୍ଷ୍ମଣ ଶକ୍ତିଭେଦ | ଟ ୦ / |
| ସାବେକି ବ୍ରତ | ଟ ୦ / | ରାମବନବେହାର | ଟ ୦ ଏ |
| ଗୁଣସାଗର | ଟ ୦ ৵ | ଅଶ୍ୱମେଧ ଯାଗ | ଟ ୦ ৵ |
| ବ୍ରଜକ୍ରୀଡ଼ା | ଟ ୦ /୬ | ଭଗବଗଣାଣ | ଟ ୦ / |

ଷଣ୍ମୁଖଦାଣ୍ଡ ସାହି } ଶ୍ରୀ ଶ୍ୟାମସୁନ୍ଦର ଯନ୍ତ୍ରାଳୟ ।
ପୋଃ ଅଃ ବ୍ରହ୍ମପୁର, ଗଞ୍ଜାମ } ବୁକ୍‌ସେଲର ।